# ଭାଇ ଜିଉନ୍ତିଆ ବ୍ରତ କଥା ।

ପାଟଣାଷ୍ଟେଟ ବାରପୁଡଗିଆ ନିବାସୀ
ଶ୍ରୀ ଦୁର୍ଯ୍ୟୋଧନ ମିଶ୍ର ଶର୍ମ୍ମାଙ୍କ ଦ୍ୱାରା
ରଚିତ ହୋଇ
ପାଟଣାଷ୍ଟେଟ ଜରସିଙ୍ଗା ନିବାସୀ
ଶ୍ରୀ ରାମଚନ୍ଦ୍ର ମେହେର ଏ: ମା: ଙ୍କ ଦ୍ୱାରା
ପ୍ରକାଶିତ ହେଲା ।

✲ ପ୍ରଥମ ସଂସ୍କରଣ ✲

କଟକ, ଅରୁଣୋଦୟ ପ୍ରେସରେ ମୁଦ୍ରିତ ।
୧୯୩୬

ପ୍ରାପ୍ତିସ୍ଥାନ
ଅରୁଣୋଦୟ-ପୁସ୍ତକାଳୟ ।
ବାଲୁବଜାର କଟକ ।
ପୋ: ଚାନ୍ଦନୀଚୌକ ।

ମୂଲ୍ୟ ଟ ° ୵ ଦୁଇଅଣା ମାତ୍ର ।

# ଉତ୍ସର୍ଗପତ୍ର

ଯେଉଁ ଭଗ୍ନୀ ପିତ୍ରାଳୟରେ ଥିବାବେଳେ ଅର୍ଥାତ୍ ବାଲ୍ୟାବସ୍ଥାରେ "ଭାଇ ଜିଉନ୍ତିଆ" ନାମକ ଏକ ବ୍ରତ କରି ବ୍ରତର ମୁଦ୍ରାଙ୍କିତ କାହାଣୀ ବା ସ୍ତବ ପଢ଼ିବାକୁ ବା ଶୁଣିବାକୁ ନ ପାଇ ଦାଦା ! ଦୁର୍ଗାସ୍ତୁତି ଦେଲେ ଏବେ ପଢ଼ିଦଅ, ଯେ କୌଣସି ବହି ଖଣ୍ଡେ ଦେଲେ ପଢ଼ି ଶୁଣାଇ ଦଅ ବୋଲି କାନ୍ଦକାନ୍ଦଣା ହୋଇ ଉପାସ ଶରୀରରେ ଅନୁକ୍ଷିପିତ ବଦନରେ କହି ଅନ୍ୟ କୌଣସି ବହି ଶୁଣିଲେ ମଧ୍ୟ ଆଶା ପୂର୍ଣ୍ଣ ନ ହେବାରୁ ଦୁଃଖିତା ହୋଇ ରହୁଥିଲେ, ସେହି ଭଗ୍ନୀଙ୍କ ପୂର୍ବ ଅସୁବିଧା ନିବାରଣାର୍ଥେ ଏହି କ୍ଷୁଦ୍ର ପୁସ୍ତିକା ଖଣ୍ଡି ତାଙ୍କ ହସ୍ତରେ ଅର୍ପିତ ହେଲା । ଇତି । ୮-୧-୩୦

ଝରଣୀ ସ୍କୁଲ
ପୌଷ ଶୁକ୍ଳ-ଅଷ୍ଟମୀ ।

ପ୍ରଣତ
ଶ୍ରୀ ଦୁର୍ଯ୍ୟୋଧନ ମିଶ୍ର ଶର୍ମା ।
ହେଡ୍ ମାଷ୍ଟର ।

# ଭୂମିକା

ଏହି ଉତ୍କଳଦେଶରେ ବାଳକାମାନେ ଓ ସ୍ତ୍ରୀମାନେ ପ୍ରତିବର୍ଷ ଆଶ୍ୱିନମାସରେ "ଭାଇ ଜିଉନ୍ତିଆ" ନାମକ ଏକ ବ୍ରତ ପାଳନ କରି ଏହିଁରେ ପଢ଼ିବା ନିମନ୍ତେ କୌଣସି ଭାଇ ଜିଉନ୍ତିଆ ସମ୍ବନ୍ଧୀୟ ପୁସ୍ତକ (ମୁଦ୍ରାଙ୍କିତ) ନ ପାଇ କେବଳ ଇତସ୍ତତ ପୂଜା ଟିଏ କରି ମନୋ-ଦୁଃଖରେ ହ-ଅବାହକୁ ଫେରି ଆସନ୍ତି, ଏହି ଅସୁବିଧା ନିବାରଣାର୍ଥେ ଏହି ଭାଇ ଜିଉନ୍ତିଆ ବ୍ରତ ପ୍ରକାଶ ହେଲା । ଲୋକସମାଜରେ ଗୃହୀତ ହେଲେ ଆପଣାର ଶ୍ରମ ସଫଳ ମନେ କରିବି ।

ଏହି ପୁସ୍ତକ ପ୍ରକାଶ ସମ୍ବନ୍ଧେ ପ୍ରିୟତମ ବାବୁ ରାମଚନ୍ଦ୍ର ମେହେର ମୋତେ ବହୁତ ଉତ୍ସାହ ଦେଇ କେତେକ ଅର୍ଥ ସାହାଯ୍ୟ କରିଅଛନ୍ତି । ଏଣୁ ତାହାଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଅଛି । ଇତି ।

ଝରଣୀ
୮-୧-୩୦

ଲେଖକ—
ଶ୍ରୀ ଦୁର୍ଯ୍ୟୋଧନ ମିଶ୍ର
ହେ: ମା:

# ଭାଇ ଜିଉନ୍ତିଆ ବ୍ରତ କଥା ।

ପ୍ରଣମ୍ୟ ପାର୍ବତୀଂ ଦେବୀଂ ଜଗନ୍ମାତଂ ତୁ ସର୍ବଦା ।
ମମ ଦ୍ରୁଷ୍ଣଂ ଶୁଭଂ ନିତ୍ୟଂ କୁରୁ ଦୁର୍ଗେ ନମୋଽସ୍ତୁତେ ॥

ନମସ୍ତେ ଦୁର୍ଗା ମାଗୋ ନମସ୍ତେ ମାହେଶ୍ୱରୀ ।
ନମସ୍ତେ ପାର୍ବତୀ ଉମା ନମଃ ଶାକମ୍ଭରୀ । ୧ ।
ନମସ୍ତେ ଦୁର୍ଗା ମାଗୋ ନମସ୍ତେ ପାଟଖଣ୍ଡା ।
ନମସ୍ତେ ନିଦ୍ରକଳ୍ପୀ ଗୋ ନମଃ ଦରଚଣ୍ଡୀ । ୨ ।
ନମସ୍ତେ ଦୁର୍ଗା ମାଗୋ ଜଗତ ଠାକୁରାଣୀ ।
ନମସ୍ତେ ଦୁର୍ଗା ମାଗୋ ତୁ ନିଃସହାୟ ପ୍ରାଣୀ । ୩ ।
ନମସ୍ତେ ଦୁର୍ଗା ମାଗୋ ଅନାଦି ବୃଦ୍ଧ ମାତା ।
ନମସ୍ତେ ଦୁର୍ଗା ମାଗୋ ହରଣ ଜନହିତା । ୪ ।
ନମସ୍ତେ ଦୁର୍ଗା ମାଗୋ ନମସ୍ତେ ସର୍ବେଶ୍ୱରୀ ।
ଜଗତେ ଭିନ୍ନ ମାଗୋ ଅନେକ ରୂପ ଧର । ୫ ।
ନମସ୍ତେ ଦୁର୍ଗା ମାଗୋ ତୁ ଦେଉ ଧନ ଜନ ।
ଜଗତେ ପୂଜାକୁ ଲଭ କରୁ ପୂର୍ଣ୍ଣକାମ । ୬ ।
ଧର୍ମ ଯୁଦ୍ଧ ଦେଖିଲେ ମନରେ ହେଉ ତୋଷ ।
ଅଧର୍ମ ଯୁଦ୍ଧ ଦେଖିଲେ ବନେ କରୁ ଗ୍ରାସ । ୭ ।
ପାଟଣେ ପାଟଣେଶ୍ୱରୀ ହୋଇ ପୂଜା ପାଉ ।
ଜଙ୍ଗୁସିଂହେ ପାଟଖଣ୍ଡା ନାମେ ଫଳ ଦେଉ । ୮ ।
ରଣସ୍ଥରେ ରହନ୍ତୁ ବୋଲାଇ ମଣିନାଗ ।
ବାଣପୁରେ ଭଗବତୀ ଖାଉ ଭୋଗ ରାଗ । ୯ ।

ଯାଜପୁରେ ରହିଛୁ ତୋ ନାମ ବିରଜାଇ ।
ସୋନପୁରେ ସୁରେଶ୍ୱରୀ ନାମ ତୁ ବୋଲାଇ । ୧୦ ।
ନୟାଗଡ଼େ ସ୍ଥିତ ହେଲୁ ବାଉଶୀ ଠାକୁରାଣୀ ।
ଅଠମଲ୍ଲିକରେ ଲିଙ୍ଗ ରୂପ ତୁ ଭବାନୀ । ୧୧ ।
ଏହିପରି ଗଡ଼ଜାତେ ଗଢ଼ ନାମ ବହି ।
ପୂଜା ପାଉଅଛୁ ତୁହି ଅଗୋ ମହାମାୟୀ । ୧୨ ।
ଗ୍ରାମେ ଗ୍ରାମେ ପୂଜା ଖାଉ ହୋଇ ଗ୍ରାମପତି ।
ଘରେ ଘରେ ଇଷ୍ଟଦେବୀ ନାମ ଧରି ସ୍ଥିତି । ୧୩ ।
ଏପରି ଅନେକ ସ୍ତବ ଅଛଇ ତୋହର ।
କେତେ ବଖାଣିବ ମୂର୍ଖ ମନୁଷ୍ୟ ମାତର । ୧୪ ।
ଦୟା କରି ବିରଜ ମୋ କଣ୍ଠ ସିଂହାସନେ ।
କହି ଦେ ମା ତୋ ମହିମା ପ୍ରସନ୍ନ ବଦନେ । ୧୫ ।
ଏତେ ବୋଲି କରଯୋଡ଼ି ବିପ୍ର ଦୁର୍ଯ୍ୟୋଧନ ।
ଦୁର୍ଗାଙ୍କୁ ଧ୍ୟାଇଣ ଲେଖେ ଜଗନ୍ନାଥ ଗୁଣ । ୧୬ ।

ଶୁଣ ଜନେ ମନ ଦେଇ ପୂର୍ବର ଚରିତ ।
ଶ୍ରୀ ଜଗନ୍ନାଥ ବୋଲି ଯା ନାମ ବିଦିତ । ୧ ।
ପୂର୍ବକାଳେ କଳିଙ୍ଗ ରାଜ୍ୟରେ ଗ୍ରାମ ଏକ ।
ସେ ଗ୍ରାମର ନାମ ଅଟେ ସୁଫଳ ଦାୟକ । ୨ ।
ସୁଫଳ ଦାୟକ ଗ୍ରାମେ ଆଶ୍ୱିନ ମାସରେ ।
ଶୁକ୍ଳପକ୍ଷ ସପତମୀ ଚନ୍ଦ୍ର ବାସରେ । ୩ ।
ବାଳାମାନେ ସଞ୍ଜତରୁ ଶୁଦ୍ଧ କାର୍ଯ୍ୟ ସାରି ।
ଫୁଲ ଫଳ ଯୋଗାଡ଼ିବା ଦେଖି ଏକ ନାରୀ । ୪

ପଶୁରଙ୍କ ଭକ୍ତିଭରେ ହେ ନାନା ପକ୍ଷୀ ।
ଏ କାରଣେ ଫୁଲ ଫଳ ଯୋଗାଉଛ ଅସେ । ୫ ।
ଅଜ ଦେଖାନାହିଁ ପୁଣି କାଲି ଶୁଣା ନାହିଁ ।
ଆଶ୍ଚର୍ଯ୍ୟ ହେଉଛ ତୁମ୍ଭ ଫୁଲ-ତୋଡ଼ା ଗୁହିଁ । ୬ ।
ଶୀଘ୍ର ସଂଶୟ ଫିଟାଇ କହ ଗୋ ଶ୍ରୀମନ୍ତ ।
ଉତ୍ସନ୍ନ ହେଉଛି ମନ ଶୁଣିବାକୁ ଉକ୍ତି । ୭ ।
ନାରୀଠାରୁ ଏ ବଚନ ଶୁଣି ଏକ ବାଳା ।
ବନସ୍ଥିବନତେ କହେ ଶୁଣ ଗୋ ଅବଳା । ୮ ।
ଅଜ ଆଶ୍ୱିନ ମାସର ସପ୍ତମୀ ତିଥି ।
ଭାଇଙ୍କ ନାମରେ ଅଜ ବ୍ରତଟିଏ ଅଛି । ୯ ।
ଭାଇ ଜିଉନ୍ତିଆ ନାମ ତାହାର ଗୋ ଶୁଣ ।
ଭାଇ ଶୁଭ ଦଶା ପାଇଁ ହୋଇଛି ଭିଆଣ । ୧୦ ।
ସୁଭଦ୍ରା ନାମ୍ନୀ ତାଠାରୁ ଏ ବଚନ ଶୁଣି ।
କାହାର ପୂଜା କେ କେବେ କରିଥିଲା ପୁଣି । ୧୧ ।
ସଂଶୟ ଫିଟାଇ ସବୁ କହଧେ ଗୋ ମୋତେ ।
ମୁଁ ପୁଣି ବ୍ରତ କରିବ ହୋଇଲେ ସବତେ । ୧୨ ।
କେତେବେଳେ କି କି ଦ୍ରବ୍ୟେ ପୂଜା କରାଯାଏ ।
ସକଳ ତତ୍ତ୍ୱ ରୂପେ କହ ଅଗୋ ମାଏ । ୧୩ ।
ଏତେ କହଣ ସୁଭଦ୍ରା ତୁନି ହୋଇ ରହି ।
କଥା ଶ୍ରବଣ ନିମନ୍ତେ ହୁଅନ୍ତି ବନସ୍ଥୀ । ୧୪ ।
ଏମନ୍ତ ସମୟେ ଏକ ବ୍ରାହ୍ମଣ ପଣ୍ଡିତ ।
ସେ ସ୍ଥାନରେ କାହିଁ ଅସି ହେଲେ ଉପଗତ । ୧୫ ।
ତାଙ୍କୁ ଦେଖି ଶ୍ରୀମନ୍ତୀ ସୁଭଦ୍ରା ବନସ୍ଥରେ ।

ବାଣୀ ଭଷିଲେକ ଦୁହେଁ ହରଷ ଚିତ୍ତରେ । ୧୬ ।
ପଚାରିଲେ ହେ ପଣ୍ଡିତେ ଅମ୍ଭର ସଂଶୟ ।
ଫିଟାଇଣ ଚାଲିଯିବ ହୋଇଲେ ସମସ୍ତ । ୧୭ ।
ନୋହିଲେ କଦାପି ତୁମ୍ଭେ ଯାଇ ନ ପାରିବ ।
ଅମ୍ଭ ଇଚ୍ଛା ପୂର୍ଣ୍ଣ କର ଯହିଁ ଇଚ୍ଛା ଯିବ । ୧୮ ।
ପଣ୍ଡିତେ ବୋଇଲେ ଅଲୋ କି ସଂଶୟ ତୁମ୍ଭ ।
ଫିଟାଇ କହିଲେ ହିନା କରନ୍ତୁ ମୁଁ ଦମ୍ଭ । ୧୯ ।
ନାରୀଏ ବୋଲନ୍ତି ଭାଇ ଜିଉନ୍ତିଆ ବ୍ରତ ।
କେବେ କିଏ କରିଥିଲେ କା ପୂଜା ପ୍ରକୃତ । ୨୦ ।
କେତେବେଳେ ପୂଜା ହୁଏ ପୁଣି କି କି ଦ୍ରବ୍ୟ ।
ସକଳ ବୁଝାଇ ପ୍ରଭୁ କହ ଅମ୍ଭ ଆଗେ । ୨୧ ।
ନାରୀଙ୍କ ବଚନ ଶୁଣି ସେ ବିପ୍ର ନାୟକ ।
ପୂରୁବର କଥା ଏକ ବଖାଣିଲେ ଦେଖ । ୨୨ ।
ପୂର୍ବେ ମୁଁ ଯା ଶୁଣିଥିଲି ଶୁଣ ସେ କାହାଣୀ ।
ଭାଇ ଜିଉନ୍ତିଆ ବ୍ରତ ଯା ନାମ ବଖାଣି । ୨୩ ।
ମୋ ପିତା ପିତାଙ୍କ ପିତା କହିଥିଲେ ପରେ ।
ଚ୍ୟବନ ମହାଋଷିଙ୍କ ଆଶ୍ରମ ପାଖରେ । ୨୪ ।
ଏକଦିନେ ଈଶ୍ୱର ଈଶ୍ୱରୀ ବୁଲୁଁ ବୁଲୁଁ ।
ମହାଦେବୀଙ୍କୁ ଈଶ୍ୱର ପଚାରିଲେ ମୃଡ଼ । ୨୫ ।
କହ କାଲି କେଉଁ ହେତୁ ଥ୍ଲାନୁପସ୍ଥିତ ।
ଖାଦ୍ୟପେୟ ଅଭାବେ ମୁଁ ବହୁତ ଦୁଃଖିତ । ୨୬ ।
ମନ୍ଦର ଶୂନ୍ୟ କରଣ କେଣେ ଗଲ ଚାଲି ।
ନାରୀଙ୍କ ଉଚିତ ନୁହେ ପଡ଼ା ଯିବା ବୁଲି । ୨୭ ।

ଯେଉଁ ନାରୀ କାନ୍ତ ତେଜ ପରବଂଶେ ଯାଏ ।
ପର ଜନ୍ମେ ପଶୁ ବଛଲ୍ଭରେ ଜନ୍ମ ହୁଏ । ୨୮ ।
ଯେଉଁ ନାରୀ ପତିସେବା କରେ ତତପର ।
ପତିବ୍ରତା ସ୍ତ୍ରୀବୋଲି ଲଭେ ସ୍ୱର୍ଗପୁର । ୨୯ ।
ଯେଉଁ ନାରୀ ପତ୍ୟାଙ୍କୁ ପକାଏ ତଳରେ ।
ଅତି ଦୁଃଖେ ଦୁଃଖୀ ହୋଇ ଚଳେ ସେ ସଂସାରେ । ୩୦ ।
ଯେଉଁଘରେ ସ୍ନେହ ଭକ୍ତି ଲାଗିଥାଏ ଜାଣ ।
ଧନ୍ୟ ସେହୁ ଗୃହଜନ ଧନ୍ୟ ସେହୁ ସ୍ଥାନ । ୩୧ ।
କିନ୍ତୁ ତୁମ୍ଭେ ନ କହଣ ଯାଇଥିବା ପାଇଁ ।
ମୋହର ଶାପକୁ ଘେନସି ଗୋ ମହାମାଈ । ୩୨ ।
ଏମନ୍ତ ବେଳେ ପାର୍ବତୀ ଯୋଡ଼ି ବେନିକର ।
ଅଟେ ଅଧୀନର ବାଣୀ ଶୁଣ ମହେଶ୍ୱର । ୩୩ ।
ପଂଛ ଦୋଷ ଅନୁରୂପେ ପାପ ମୁଁ ଲଭିବ ।
ଅଜ୍ଞାଦେଲେ ଏବେ ମୁ ସେ କଥା ବଖାଣିବି । ୩୪ ।
ଏତେ କହିଣ ପାର୍ବତୀ ଅତି ବିନମ୍ରରେ ।
ହରଙ୍କ ସମ୍ମୁଖେ ଉଭା ହୋଇଲେ କାତରେ । ୩୫ ।
ହର ଅଜ୍ଞାଦେଲେ ନିଃସନ୍ଦେହେ ସେହିକଥା ।
ପ୍ରକାଶ କର ମୋ ଆଗେ ନ ରଖି ଛଳତା । ୩୬
ତତ୍କ୍ଷଣେ ହରଙ୍କ ଅଜ୍ଞାପାଇ ମହାଦେବୀ ।
କଥା ଆରମ୍ଭିଲେ ତହୁଁ ଶୁଣ ଗୋ ବାନ୍ଧବ । ୩୭ ।
ମୃତ୍ୟୁ ଜମ୍ବୁ ଦୁର୍ଗୋତ୍ସବ ବୋଲି ବ୍ରତ ଅଛି ।
ଦୁର୍ଗାଙ୍କ ନାମରେ ସେହି ବ୍ରତ ପ୍ରକଟିଛି । ୩୮ ।
ବରଷକେ ତେର ଜାତ ଅଛଇ ମୋହର ।

ବୃଷ୍ଟରେ ଅଶ୍ୱିନ ପୁଣି ଚଇତ ମାସର । ୩୯ ।
ଭଲେ ମଙ୍ଗଳ ବାରେ ମଙ୍ଗଳା ନାମେଣ ।
ପୂଜା ପାଏ ସର୍ବଠାରେ ଭକତ ରୂପେଣ । ୪୦
ଗ୍ରାମେ ଗ୍ରାମେ ଭିନ୍ନ ଭିନ୍ନ ରୂପ ପୂଜା ପାଏଁ ।
ଭକତ ଅନୁରୂପେଣ ଫଳ ତାଙ୍କୁ ଦିଏଁ । ୪୧ ।
ତେର ଜାତ ମଧ୍ୟେ ଭଗ ଜନ୍ମ ବ୍ରତ ।
ନାମରେ ଫଷାର ଯାକ ହୋଇଛି ବିଦିତ । ୪୨ ।
ପ୍ରତି ବର୍ଷ ଅଶ୍ୱିନମାସ ଶୁକ୍ଳପକ୍ଷରେ ।
କୃଷ୍ଣାଷ୍ଟମୀ ଠାରୁ ଶୁକ୍ଳାଷ୍ଟମୀ ପର୍ଯ୍ୟନ୍ତରେ । ୪୩ ।
ଷୋଳ ଦିନଯାକ ମୋର ପୂଜା ହୁଏ ଜାଣ ।
ଶେଷ ଦିନ ଭଗ ଜନ୍ମଅରେ ବଖାଣ । ୪୪ ।
ସେଦିନ ମୋହର ବ୍ରତ ନାରୀଏ କରନ୍ତି ।
ଶତକାଳ ସେଦିନ ହେବାରୁ ଉପବାସନ୍ତି । ୪୫ ।
ନାରୀମାନେ ବ୍ରତପାଳନ ଷୋଳ ଅଠର ।
ଅଠରଣ୍ଡି ପଲ୍ଲ ଫଳ ଆଣନ୍ତି ଯେତେ । ୪୬ ।
ମେବା ନାରଙ୍ଗ କୁନ୍ଦୁରୁ କଖାରୁ କାକୁଡ଼ି ।
ବେଲ ଅମ୍ବିଲା କଦଳୀ ଯା କର୍ମେ ଯା ମିଳେ । ୪୭ ।
ରଙ୍ଗଫୁଲ ସେହିପରି ଅଠରଣ୍ଡି ଆଣି ।
ତାଳ ଅଠରଣ୍ଡି ଆଣି ସଜାଡ଼ନ୍ତି ପୁଣି । ୪୮ ।
ବେଳନ୍ତି ପାଞ୍ଚବର୍ଣ୍ଣର ରଙ୍ଗକୁ ଆଣନ୍ତି ।
ନାଲ, ପୀତ ଧଳା କଳା, ସବୁଜ ଗଢ଼ନ୍ତି । ୪୯ ।
ପବିତ୍ର ଚଉକାରକୁ ଡକାଇ ଆଣିଣ ।
ଦୁର୍ଗାବୋଲି ଚିତ୍ରୁଳାଏ ଲେଖନ୍ତି ସ୍ଥାନ । ୫୦ ।

କେହିମାନେ ପଞ୍ଚୁଠାଏ ଆଣି ରଖିଦ୍ୟନ୍ତି ।
କେତେକେ ଖଣ୍ଡାକୁ ରଖି ପୂଜା ଅଚରନ୍ତି । ୫୧ ।
କେହୁ ଦଶଭୁଜା ଦୁର୍ଗା ଲେଖିବା ଉତ୍ତମ ।
ଦେଖିବା ମାତ୍ରକେ ଜାତ ହୁଏ ମନୋରମ । ୫୨ ।

ଦଶ ହସ୍ତେ ଅସ୍ତ୍ର ଶସ୍ତ୍ର ଧରାଇଣ ଥାନ୍ତି ।
ଦୁର୍ଗା ତଳେ ବାହନରେ ସିଂହକୁ ଲେଖନ୍ତି । ୫୩ ।
ଝୋଟିଯୋଗ ଏପରି ଅନେକ ପ୍ରକାରେ ।
ଚିତ୍ରଣ କରିଣ ଥାନ୍ତି ଉତ୍ସବ ମନରେ । ୫୪ ।
ଆଖୁ ରମ୍ଭା ତରୁ ନେଇ ଉଭୟ ପାର୍ଶ୍ୱରେ ।
ରୋପଣ କରନ୍ତି ମଣ୍ଡପ ଶୋଭାବନରେ । ୫୫ ।
ସମସ୍ତେ ମିଳିଣ ଏକ କକ୍ଷାରୁ ବୁଦାକୁ ।
ଫୁଲ ଡେମ୍ଫ ଥାଇଣ ଆଣନ୍ତି ସେ ସ୍ଥାନକୁ । ୫୬ ।
ସେ ବୁଦାକୁ ବଳି ଦୃଶ୍ୟ କରନ୍ତି ତଥିର ।
ସତେ ବଳି ଠିଆହେବା ପ୍ରାୟେକ ବର୍ଷର । ୫୭ ।
ନିଜ ନିଜ ଘରେ ପୂଜା ସଜାମାନ କରି ।
ଚକୁସ୍ୱ ଲଡୁ ଅଦ ଯେ ମୁଆଁ ନଫଟୁଢ଼ । ୫୮ ।
ବେଳ ଅବସାନ ହେବା ଜାଣିଣ ସମସ୍ତେ ।
ଗୁଅଦ୍ଧୂତ ହଳଦୀ ଅଁଳାର ସହିତେ । ୫୯ ।
ପୂର୍ବେ ଆଣିଥିବା କାଠି ଅଠଖଣ୍ଡ ଧରି ।
ଅପାମାର୍ଗ ନାମ ଅଟଇ ଯାହାର ବସ୍ତାର । ୬୦ ।
ଅକ୍ଷତ ସଙ୍ଗତେ ଦୁର୍ବାଦଳ ଶତେ ଶତେ ।
ଖାଳପଣେ ମେଣ୍ଢା ବାନ୍ଧି ଧରଣ ହସ୍ତେ । ୬୧ ।
ଯାହାର ଯେତେକ ଭାଇ ସେତେ ମେଣ୍ଢା କରି ।

ସ୍ନାନକୁ ଚଳିବେ ଜୁଇସଙ୍ଗ ଯେତେ ନାରୀ । ୬୨ ।
ଦୁର୍ଗାଦେବୀ ନାମଗୋଷ୍ଠ ବାଟେ ଘାଟେ ସ୍ମରି ।
ହୁଳହୁଳି ଶବ୍ଦେ ଯେସନ୍ତେ କମ୍ପେ ବସୁନ୍ଧରୀ । ୬୩ ।
ତେସନ ପ୍ରତ୍ୟେକ ଯାଇ ଘାଟେ ପରବେଶ ।
ସର୍ବେ ମିଳି ଦୁର୍ଗା ସ୍ମରି ହୋଇଣ ହରଷ । ୬୪ ।
ଦନ୍ତ ଧାବନ କରିଣ ଚକ୍ଷୁ ମାର୍ଜିଣ ।
ସ୍ନାନେ ଶୁଚି ହୋଇ କୂଳେ ମିଳିବେ ବହନ । ୬୫ ।
ବାଲିରେ ଉତ୍ତମରୂପେ ବେଦିଏ ଗଢ଼ିବେ ।
ଅଠଖଣ୍ଡ କାଠି ନେଇ ସେଥିରେ ଗାଡ଼ିବେ । ୬୬ ।
ଅକ୍ଷତ ପକାଇ ପୁଣି ଫୁଲ ଗନ୍ଧ ଦେଇ ।
ହୁଳହୁଳି ପକାଇଣ ଦୁର୍ଗାଙ୍କୁ ବନ୍ଦାଇ । ୬୭ ।
ନେଇଥିବା ମେଣ୍ଢାମାନ ସେ ସ୍ଥାନେ ଚଢ଼ାଇ ।
ପୁଣି ଫେରାଇ ଅଣିବେ ସକଳ ମାଯୋଇ । ୬୮ ।
ସୂର୍ଯ୍ୟାସ୍ତ ହେବା ଜାଣିଣ ଓଷାଇତୀ ମାନେ ।
ଘାଟୁ ଗୃହକୁ ଆସିବେ ଦୁର୍ଗା ସ୍ମରି ମନେ । ୬୯ ।
ଯେ ଯାହା ଗୃହରେ ମିଳି ଶୁକ୍ଳ ବସ୍ତ୍ର ଲୋଡ଼ି ।
ଭଇ ମତ୍ରେ ପୂର୍ବଂ ତାହା ହୋଇବ ସଜାଡ଼ି । ୭୦ ।
ଏ ପର୍ବେ ଯେତେକ ଦ୍ରବ୍ୟ ଲୋଡ଼ା ହେବ ଜାଣ ।
ସେ ସବୁ ଜୁଇ ସ୍ୱହସ୍ତେ ହୋଇବ ଭିଆଣ । ୭୧ ।
ଅନ୍ୟର ପଦାର୍ଥେ ଫଳ କପର୍ଦ୍ଦକ ନାହିଁ ।
ପୂର୍ବରୁ ବିଧାତା ଏହା ଦେଇଛି ଭିଆଇ । ୭୨ ।
ତଦପରେ ବସ୍ତ୍ର ପିନ୍ଧି ଅର୍ଦ୍ଧ ସନ୍ଧ୍ୟାରେ ।
ଧ୍ୱଜା ଝଣ୍ଡାମାନ ଧରି ଘାଟ ସହିତରେ । ୭୩ ।

ଅଖୁ କଦଳୀ ନଡ଼ିଆ ଆଦ ପକ୍ୱ ଫଳ ।
ଛନ୍ତି ସପ୍ତମୀର ହେତୁ ନ ଛୁଅନ୍ତି ତାଳ । ୭୪ ।
ପୂର୍ବଦର ଅଷ୍ଟୋତ୍ତର ଶତଦୂର୍ବାଦଳେ ।
ପୁଷ୍ପିଷ୍ଟେତ ମେଣ୍ଟାକର ବାନ୍ଧନ୍ତି ତତ୍ପରେ । ୭୫ ।
ସେ ମେଣ୍ଟାରେ ଜଉନ୍ତିଆ ଗୁଡ଼ାଇ ରଖନ୍ତି ।
ଯେତେ ଭାଇ ସେତେ ମେଣ୍ଟା ଯତନେ ବାନ୍ଧନ୍ତି । ୭୬ ।
ସମସ୍ତ ଧରଣ ଯାଇ ମିଳ କୋଠୋରେ ।
ଉତ୍ତମ ପୂଜକ ବିପ୍ର ଥିବେ ସେ ସ୍ଥାନରେ । ୭୭ ।
ସେ ବିପ୍ରଙ୍କୁ ପୂରୁବରୁ ବରଣ କରାଇ ।
ଉପବାସରେ ରଖାଇ ଥିବେ ଯେତେ ଗୋଠ । ୭୮ ।
ସେତେ ପୂଜା ଖଣ୍ଡିମାନ ଅର୍ଦ୍ଧ ଅର୍ଦ୍ଧେ ଦେଇ ।
କଥାଣୀ ନାମେ ସରସ୍ୱତୀଙ୍କୁ ପୂଜା ଦେଇ । ୭୯ ।
ଏହି ପୂଜା ବିପ୍ରବର ଅତିଭକ୍ତି ଚିତ୍ତେ ।
ପୂରଣ କରଣ ହରଷେବାଲ ଢ଼ାକଦ୍ୟନ୍ତେ । ୮୦ ।
ଦେବୀ ଉଭୟ ପାର୍ଶ୍ୱସ୍ଥ ଗଣେଶ କାର୍ତ୍ତିକ ।
ନୈଷ୍ଠିକ ମନରେ ପୂଜା କରିବେ ପୂଜକ । ୮୧ ।
ତଦନ୍ତରେ ନାରୀମାନେ ଉଅ ବୃକ୍ଷଳରେ ।
କ୍ଷୀର ମିଶାଇଣ ଲିଙ୍ଗ ତୋଳିବେ ଯତ୍ନରେ । ୮୨ ।
ଧୂପ ଦୀପ ଦେଇ ପୁଣି ସ୍ୱସ୍ୱ ଦୀପ ଜାଳି ।
ଫୁଲଚନ୍ଦନ ଦେଇଣ ଦେବେ ହୁଳହୁଳି । ୮୩ ।
ନିଜ ନିଜ ମେଣ୍ଟାମାନ ଲିଙ୍ଗସ୍ଥାନେ ଥୋଇ ।
ହରଷଚିତ୍ତରେ ତାହା ଚଢ଼ାଇବେ ନେଇ । ୮୪ ।
ଅଣିଥିବା ଜସମ୍ଭୂତ ପଦାର୍ଥ ଯେତେରେ ।

ନୈବେଦ୍ୟ ଦେଇଣ ପୁଣି ଖଣ୍ଡା ଧରୁ କରେ । ୮୫ ।
ପୂର୍ବରୁଦା ବଳନାମେ ଯାହାର ଖଦତ ।
ସଂହାର କରଣ ଦେବେ ତାହାର ବଦତ । ୮୬ ।
ଏଣୁ ପୂର୍ବୁ ଜିଉନ୍ତିଆ ପାଞ୍ଚ ଜାଲ କର ।
ଦଶ ଗଣ୍ଠି ମଧେ ତାହା ହୋଇବ ତଥର । ୮୭ ।
ରକ୍ତବର୍ଣ୍ଣ ସୂତ୍ରେ ତାହା ତଥର କରିବ ।
ନାରୀ ମାନଙ୍କ ସ୍ୱହସ୍ତେ ପ୍ରସ୍ତୁତ ହୋଇବ । ୮୮ ।
ଦୁର୍ଗା ନାମ ଗୁଣି ଗୁଣି ସେ ଗଣ୍ଠି ପାଡିବେ ।
ଗଣ୍ଠି ହୋଇବାବେଳେ ଅନ ନ ଛୁଇବେ । ୮୯ ।
ତଦନ୍ତରେ ଏକମନେ ବସି ସୁଚାରୁରେ ।
କଥାଣୀ ଶ୍ରବଣେ ପଥ୍ୟ ହୋଇବେ ମନରେ । ୯୦ ।
କଥା ଶେଷ ପରେ ବିପ୍ରେ ଦେବେ ସୁଦକ୍ଷିଣା ।
ହରଷ ଚିତ୍ତରେ ହେନ୍ତେ ନ ହେବେ ବିମନା । ୯୧ ।
ଭାଇ ଶୁଭକାମନାରେ ଗୃହକୁ ପକାଇ ।
ଦୁର୍ଗାଙ୍କୁ ବନ୍ଦାଇ ପୁଣି ହୁଳହୁଳୀ ଦେଇ । ୯୨ ।
ଯେ ଯାହାର ଭାଇମାନେ ଥିବେ ଦେଶାନ୍ତରେ ।
ଯେ ନ ଆସି ପୂଜା କରେ ଆପଣା ଗୃହରେ । ୯୩ ।
ତାହା ଏ ପୂଜାରୁ ଅତି ସହସ୍ତ ଜଣିବ ।
ଏଣୁ ଏହା ଅନୁରୂପେ ପୂଜା ସେ କରିବ । ୯୪ ।
ଏହା ଅନୁରୂପେ ପୂଜା ନ କଲେଟି ଜାଣ ।
ବାଞ୍ଛିତ ଫଳ ସେ ପୂଜା ନ ଲଭେ ପ୍ରମାଣ । ୯୫ ।
ଈଶ୍ୱରଙ୍କ ସମ୍ମୁଖରେ ପାର୍ବଣ କରନ୍ତି ।
ପୂଜା ପରେ ଶୁଣ କିସ ଧର୍ମ ଆଚରନ୍ତି । ୯୬ ।

ନାନା ବାଦ୍ୟ ନାଚ ଗୀତ ଗାବନ୍ତି ସେଠାରେ ।
ଢ଼ାଲଖାଇ ଗୀତ ପୁଣି ସେଠାରେ ପ୍ରକାରେ । ୯୭ ।
ଢ଼ାଲଖାଇ ସ୍ତବେ ଦେବୀ ହୁଅନ୍ତି ସନ୍ତୋଷ ।
କହିଛନ୍ତି ମହା ମହା ପଣ୍ଡିତ ଜ୍ୟୋତିଷ । ୯୮ ।
ଏମନ୍ତ ପ୍ରକାରରେ ଯେ ନୋଖ୍ଣୁ ପାହାନ୍ତି ।
ସ୍ନାନକୁ ଚଳିବେ ଯେତେ ଥିବେ ଉପାସିଣୀ । ୯୯ ।
ପୂର୍ବପରି ଘାସ ପୁଣି କାଠି ଅଧ ଧରି ।
ନୈବେଦ୍ୟ ସକାଶେ କଣ୍ଠ ଧରିବେ କଦଳୀ । ୧୦୦ ।
ଜଳରେ ପ୍ରବେଶ କରି ଦାନ୍ତକୁ ମାର୍ଜନ ।
ଅମ୍ବିଳା ଦଳଘାରେ ସେ ହୋଇବେ ମର୍ଦ୍ଦନ । ୧୦୧ ।
ସ୍ନାନ ସାରି କୂଳକୁ ଅସିଣ ପୂଜାକରି ।
ଧୀରେ ଧୀରେ ଅସି ଦୁର୍ଗା ମନ୍ଦିରରେ ମିଳି । ୧୦୨ ।
ଦୁର୍ଗାଦେବୀଙ୍କୁ ସ୍ନାନରେ ଶୁଚ କରାଇଣ ।
ଫୁଲ ଚନ୍ଦନ ସିନ୍ଦୂରରେ କରିବେ ମଣ୍ଡନ । ୧୦୩ ।
ପୁଷ୍ପ ଧୂପ ଦୀପ ଦେଇ ଦେବୀଙ୍କ ସମ୍ମୁଖେ ।
ସେ ସନ୍ଧ୍ୟେ ଭାଇମାନେ ଥିବେ ପାଖେ ପାଖେ । ୧୦୪ ।
ଦେବୀଙ୍କୁ ଚଢ଼ାଇଥିବା ପୂର୍ବମେଣ୍ଟାମାନ ।
ଅଣି ତା ଭାଇଙ୍କ ଗଳେ ଦେବେ ପିନ୍ଧାଇଣ । ୧୦୫ ।
ଭାଇମାନେ ଜିଉନ୍ତିଆ ପିନ୍ଧିଣ ହରଷେ ।
ସୁବାକ ନଡ଼ିଆ ଦେଇ ଦୁର୍ଗାଙ୍କ ଉଆସେ । ୧୦୬ ।
ଅନନ୍ଦରେ ଦୁର୍ଗାଙ୍କର ଚରଣେ ପଡ଼ିବେ ।
ତହୁଁ ସର୍ବ ଉପାସିଣୀ ନୈବେଦ୍ୟକୁ ଦେବେ । ୧୦୭ ।
ନୈବେଦ୍ୟ ଦେଇଣ ପୁଣି ଗାଡ଼ ହୁଳହୁଳି ।

ପୂଜାଲିଙ୍ଗ ପିଣ୍ଡ ଆଦି ଧରିବେ ସଙ୍ଖୋଳି । ୧୦୮ ।
ନାନା ବାଦ୍ୟନାଦେ ପୁଣି ଘାଟକୁ ଚଳିବେ ।
ଅଗାଧ ଜଳେ ନେଇଣ ତାକୁ ମେଲିଦେବେ । ୧୦୯ ।
ସ୍ନାନକରି ଆସି ମିଳି ନିଜ ନିଜ ଘରେ ।
ବସନ ପାଲଟିଣ ସେ ଆନନ୍ଦ ମନରେ । ୧୧୦ ।
ମାତା ପିତା ବନ୍ଧୁଗୁରୁଙ୍କ ଚରଣ ତଳେ ।
ପଡଣ ବାଳଭୋଜନ କରିବେ ସେ ହେଲେ । ୧୧୧ ।
ବାଳକମାନଙ୍କୁ ତହୁଁ ବାଳଭୋଗ ଦେଇ ।
ନିଜେ ରନ୍ଧା କାର୍ଯ୍ୟେ ମଗ୍ନ ହେବେ ସେ ଉଷାଇ । ୧୧୨ ।
ଦ୍ରବ୍ୟ ଅନ୍ନ ତରକାରୀ ଖିରିପିଠା କରି ।
ବନ୍ଧୁ ବାନ୍ଧବ ଅଦ୍ଧଙ୍କୁ ଆଣିଣ ହକାରି । ୧୧୩ ।
ସନ୍ତୋଷରେ ସେମାନଙ୍କୁ ଦେଇଣ ଭୋଜନ ।
ନିଜେ ମାଆ ଆଦି ସଙ୍ଗେ କରିବେ ଭୋଜନ । ୧୧୪ ।
ସେ ଦିନ ସେ ଗ୍ରାସେ ମାତ୍ର ଭୋଜନ କରିବେ ।
ସଚ୍ଛେ ବାଳଭୋଗ ଖାଇ ସନ୍ତୋଷେ ରହିବେ । ୧୧୫ ।
ଏତେକ କହି ପାର୍ବତୀ ମଉନ ହୋଇଲେ ।
ଏସକାଳେ ଯାଇଥିଲି ବୋଲିଣ ବୋଇଲେ । ୧୧୬ ।
ଯଦି ଏଥିରେ ଦଣ୍ଡୀକୁ ଭଜନ ମୁଁ ହେବ ।
ପ୍ରାଣୀଙ୍କ ମଙ୍ଗଳ ଅଭ କେବେ ନ କରିବ । ୧୧୭ ।
ପ୍ରାଣୀଙ୍କ ନିମନ୍ତେ ସିନା ଜନମ ଅମର ।
ଦତ୍ତିରଣ ଶାପ ଦିଅ ପ୍ରଭୁ ଶୂଳଧର । ୧୧୮ ।
ଈଶ୍ୱର ଈଶ୍ୱରୀଙ୍କ ବଚନ ଶୁଣିକରି ।
ଅତି ଗଦ୍‌ଗଦ୍ ମନରେ କୋଳେ ଧରି ନାରୀ । ୧୧୯ ।

ବୋଇଲେ ପ୍ରାଣୀ ହୃତରେ ଯାଉଥିବା ପାଇଁ ।
ସନ୍ତୋଷରେ ସେହି ଦୋଷ କ୍ଷମା କରିଲଇଁ । ୧୨୦ ।
କିନ୍ତୁ କଏ କରିଥିଲେ ଜଇନ୍ତିଅ ବ୍ରତ ।
କପର ଉତ୍ପତ୍ତି ହେଲା କହ ତା ତଦନ୍ତ । ୧୨୧ ।
ପତିଙ୍କ ବଚନ ଶୁଣି ଦେବୀ ଠାକୁରାଣୀ ।
କହନ୍ତି ବିନମ୍ରୀ ହୋଇ ଶୁଣ ସେ କାହାଣୀ । ୧୨୨ ।
ହେ ଦେବ ମିଥିଲା ରାଜ୍ୟେ ଏକ ବିପ୍ରବର ।
ଅତି ଧାର୍ମିକ ପଣ୍ଡିତ ଅଟଇ ସେ ନର । ୧୨୩ ।
ତାର ଘରେ ଯେତେ ସୁତ ହୁଅନ୍ତି ଜନମ ।
ବର୍ଷକୁ ବର୍ଷ ଜନ୍ମିଣ ଲଭନ୍ତି ମରଣ । ୧୨୪ ।
କିନ୍ତୁ ଜ୍ୟେଷ୍ଠ ଝିଅ ତାର ଜୀବିତରେ ଥାଇ ।
ପତି ଘରେ ଥାଇ ପିତା ମାତା ଦୁଃଖ ସହିଁ । ୧୨୫ ।
ମନେ ମନେ ଶୋକ କରେ କାହାକୁ ନ କହେ ।
ଶିଶୁ ନ ଥିବାରୁ ଷଷ୍ଠୀଦେବୀଙ୍କୁ ସେ ଧ୍ୟାଏ । ୧୨୬ ।
ଏହିପରେ ଭଜି ଭଜି ଏକଇ ଦିନରେ ।
ବଡ଼ ଅଦ୍ଭୁତ ସ୍ୱପନ ଦେଖିଲା ନେଦରେ । ୧୨୭ ।
ଏକ ଭଇରବୀ ମୂର୍ତ୍ତି ନାନା ଅଳଙ୍କାରେ ।
ମଣ୍ଡଣା ହୋଇଣ ଅସି ମିଳିଲେ ତା ପୁରେ । ୧୨୮ ।
କହନ୍ତି ସ୍ୱପନେ ଝିଅ ଏମନ୍ତ କରିବୁ ।
ଅଶ୍ୱିନରେ ଜଇନ୍ତିଅ ବ୍ରତକୁ ପାଳିବୁ । ୧୨୯ ।
ଶ୍ରୀ ଜଇନ୍ତିଅ ବ୍ରତ ନାମ ତାର ଜାଣ ।
ସେ ବ୍ରତ କଲେକ ଭ୍ରାତ ଲଭିବୁ ତତ୍କ୍ଷଣ । ୧୩୦ ।
ତୋର ହେତୁ ତୋର ପିତା ନିର୍ବଂଶ ନୋହିବ ।

ସୁପୁତ୍ର ପାଇବ ପୁଣି ତୋ କୀର୍ତ୍ତି ବଢ଼ିବ । ୧୩୧ ।
ଧନ ଜନ ଆୟୁ ତାର ବଢ଼ିବ ବହୁତ ।
କିନ୍ତୁ ପୂଜା କର୍ମେ କେବେ ନୋହିବୁ ନସତ । ୧୩୨ ।
ଜିଉନ୍ତିଆ ବ୍ରତେ ଯେବେ ନସତ ହୋଇବୁ ।
ପିତା ବଂଶ ନାଶ ଯାଇ ସ୍ୱବଂଶ ନାଶିବୁ । ୧୩୩ ।
ଏତେ ବୋଲି ପୂଜାବିଧି କହି ଭଇରବୀ ।
ଅନ୍ତର୍ଦ୍ଧାନରେ ଗମିଲେ ସ୍ୱଆବାସ ଭୁବ । ୧୩୪ ।
ନିଦ୍ରା ତେଜି ବିପ୍ର ଝୀଅ ନିଜ କେଶ ଝାଡ଼ ।
ନିଜ ପତିଠାରେ ତାହା କହେ ବସି ପଢ଼ । ୧୩୫ ।
ପତି ଶୁଣି ହର୍ଷ ହୋଇ ପ୍ରଭାତୁ ଉଠିଲା ।
ନିରୂପିତ ଦିନରୁ ସେ ବ୍ରତ କରାଇଲା । ୧୩୬ ।
ଦଶଦିନ ପରେ ତାର ଭାଇ ହେଲା ଜାତ ।
ଦିନକୁ ଦିନ ତା ତେଜ ବଢ଼ିଲା ବହୁତ । ୧୩୭ ।
ତା ସବୁ ଶୋକ ସନ୍ତାପ ପଳାଇଲା ଖରେ ।
ଦ୍ୱାଦଶବର୍ଷ ବ୍ରତ ପାଳେ ଅଶ୍ୱିନ ମାସରେ । ୧୩୮ ।
କ୍ରମେ ପୌଗଣ୍ଡ କିଶୋର ଅବସ୍ଥା ଯାଇଣ ।
ସାତ ଅଠ ବର୍ଷେ ଶିଶୁ କଲାକ ପଠନ । ୧୩୯ ।
ଶିଶୁ ପଢ଼ା ଶୁଣି ଦେଖି ପିତା ମାତା ସୁଖେ ।
ପୌର୍ଣ୍ଣମୀର ଚନ୍ଦ୍ର ସଙ୍ଗେ ଯେସନ୍ତେ ହେବ ଯୋଷ । ୧୪୦ ।
ତେସନ୍ତ ସାନ୍ଦ୍ରେକ ପିତା ମାତା ସୁଖେ ଥାଇ ।
ଉଚିତ ବୟସେ ବିଭା କରାଇଲେ ନେଇ । ୧୪୧ ।
ଅନ୍ତେ ସୁଖେ ସେହି ପୁତ୍ର ଜୀବନ କାଟିଲା ।
ତା କୁଣ୍ଡରୁ ତା କୁଣ୍ଡକୁ ଏ ବ୍ରତ ଶୁଣିଲା । ୧୪୨ ।

ସେ ଦେଶରେ ଯେତେ ନାରୀ ଥିଲେ ସୁହକର ।
ଏ ବ୍ରତ ପାଳିଣ ଲଭିଲେକ ଯଶ ଶିରୀ । ୧୪୩ ।
ଶ୍ରୀ ବଂଶ ନୃପଙ୍କେ କାଟିଲେକ ଧନ ।
ସେ ଧନରୁ ଏହୁ ବ୍ରତ ହୋଇଲା ଉତ୍ପନ୍ନ । ୧୪୪ ।
ସେ ଧନୁ ପୂର୍ବରୁ ନିଜ ନାରୀ ଭଗ୍ନୀମାନେ ।
ପିତା ଗୃହକୁ ଅସନ୍ତି ଏ ବ୍ରତ ପାଳନେ । ୧୪୫ ।
ଏତେ କହୁଣ ପାର୍ବତୀ ଯୋଡ଼ ବେନି କର ।
ଏରୂପେଣ ଜାତ ହେଲା ଏ ବ୍ରତ ପ୍ରଚାର । ୧୪୬ ।
ସେ ଧନରୁ ମୋର ବ୍ରତ ନାରୀଏ କରନ୍ତି ।
ବ୍ରତ ଉତ୍ପତ୍ତି କହିଲ ପ୍ରଭୁ ଶୂଳପାଣି । ୧୪୭ ।
ପାର୍ବତୀ ବଚନେ ସ୍ୱାମୀ ଈଶ୍ୱର ସନ୍ତୋଷ ।
ସେ ଧନୁ ପୂଜ୍ୟ ହେବାକୁ ଦେଲେକ ଆଦେଶ । ୧୪୮ ।
ଗୌରୀ କନ୍ୟା ହେବା ମାନେ ଏ ବ୍ରତ ପାଳିବେ ।
ନୋହିଲେ ହର ହୋରେହାରେ କଷ୍ଟ ଲଭିବେ । ୧୪୯ ।
ଯେଉଁମାନଙ୍କ କର୍ମରେ ଯା ଅଛି ଲିଖନ ।
ବୋଲିଣ ବ୍ରତ ନ କର ସ୍ୱଅନ୍ତି ହେଳନ । ୧୫୦ ।
ବନ୍ଧ୍ୟା ଉପହାସାସ୍ପଦ ଯେମାନେ କରନ୍ତି ।
ଦୁଃଖୀହୁଁ ଦୁଃଖୀ ହୋଇଣ ସେମାନେ ଚଳନ୍ତି । ୧୫୧ ।
ତାଙ୍କଠାରୁ ସ୍ନାନଦାନ ସଂସାରରେ ନାହିଁ ।
ପଣ୍ଡିତ ବଚନ ଏହା ଅନ୍ୟଥା ନୁହଇ । ୧୫୨ ।
ଏତେ କହି ବୃଷବର ଆନନ୍ଦ ମନରେ ।
ଗନ୍ତବ୍ୟ ସ୍ଥାନକୁ ହେତୁ ଗଲେ ଧୀରେ ଧୀରେ । ୧୫୩ ।
ନାରୀମାନେ ସ୍ୱ ଅବାସେ କରନ୍ତେ ଗମନ ।

ବ୍ରତେ ରତ ହୋଇ ଶୁଦ୍ଧ କାର୍ଯ୍ୟେ ଦେଲେ ମନ । ୧୫୪ ।
ଭାଷଇ ଶ୍ରୀ ଦୁର୍ଯ୍ୟୋଧନ ମାତଃ ଦୁର୍ଗା ଦେବୀ ।
ଜନମେ ଜନମେ ତୋର ପାଦ ସେବୁଥିବ । ୧୫୫ ।
କିନ୍ତୁ ତବ ପାଦୁଁ କେବେ ନ ହେବ ବଛିନ୍ନ ।
ଜୀବତରେ ଥିବାଯାଏ ଦେବୁ ଜ୍ଞାନ ଦାନ । ୧୫୬ ।
ମୁଁ ତୋର ସେବକ ମାଗୋ ତୁ ମୋର ଜନନୀ ।
ସଂସାରେ ସୁଖୀ କରାଇ ରଖିବୁ ଭବାନୀ । ୧୫୭ ।
ସେବା ରୂପ ଫଳ ଯଦ ନ ଦେବୁ ଗୋ ରୁଦ୍ର ।
ଅବଶ୍ୟ ନନ୍ଦାରେ ଲିପ୍ତ ହେବୁ ମହାମାଈ । ୧୫୮ ।
ଅଧିକ ବିଶେଷ ବର୍ଣ୍ଣନାରେ କିସ ହେବ ।
ମନର ବେଦନା ତୁତ ଜାଣୁ ଅଛୁ ସବ । ୧୫୯ ।
ଏତିକରେ ଜିଦ୍‌ନ୍ତିଆ କଥା ହେଲା ଶେଷ ।
ସର୍ବେ ମିଳି ଦୁର୍ଗା ସ୍ମର ହର ହର ଭାଷ । ୧୬୦ ।

( ଇତି ଶ୍ରୀ ଭାଇ ଜିଉନ୍ତିଆ ବ୍ରତକଥା ସମାପ୍ତ । )

କଟକ ଅରୁଣୋଦୟ ପ୍ରେସରେ ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ମୁଦ୍ରିତ ।

# ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକମାନ କଟକ ଅରୁଣୋଦୟ ପ୍ରେସରେ ଏବଂ ଶ୍ରୀ ଅର୍ଜିତମିଶ୍ର । ମୁ । ବାରପଢ଼ଗିଆ । ପୋଃ । ଚୂଡ଼ାପାଲି ପାଟଣା ଷ୍ଟେଟଙ୍କ ଠିକଣାରେ ବା ନିମ୍ନ ଠିକଣାରେ ତଲାସ କଲେ ଅନାୟାସେ ପାଇ ପାରିବେ ।

୧ ଜୀଉ ଜଉନ୍ତିଆ ବ୍ରତ କଥା ... ଟ ୦ ୵

୨ ଗୁରୁଭକ୍ତି ... ଟ ୦ ୷

୩ ବୃଷକେତୁ ବଧ ... ଟ ୦ ୲

୪ ତୁଳନା ( ଯନ୍ତ୍ରସ୍ଥ )

୫ ଜୀବନ ଜାତ ( ଯନ୍ତ୍ରସ୍ଥ )

୬ ଜଗନ୍ନାଥ ସେବା ( ଯନ୍ତ୍ରସ୍ଥ ) ...

। ମୁ । ଝରଣୀ<br>। ପୋ । ପାଟଣାଗଡ଼<br>ପାଟଣାଷ୍ଟେଟ ।

ଶ୍ରୀ ଦୁର୍ଯ୍ୟୋଧନ ମିଶ୍ର<br>ହେଡ୍‌ମାଷ୍ଟର